Approved by the Text Book Committee, Madras

# ବାଳ ଗାଥିକା



ଶ୍ରୀ ବଳଭଦ୍ର ପଟ୍ଟନାୟକ—ରମ୍ଭା

ବ୍ରହ୍ମପୁର ଓଡ଼ିଆ ମଧ୍ୟମ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ରାମଚନ୍ଦ୍ର **ଅଗ୍ରୁର୍ଘ** ବି.ଏ. ଏବଂ ଚମ୍ପା ଉଚ୍ଚ ପ୍ରାଥମିକ ବୋର୍ଡ଼ ବିଦ୍ୟାଳୟର ସହକାରୀ ଶିକ୍ଷକ ଶ୍ରୀଯୁକ୍ତ ଜଟେଶ୍ୱର ମହାପାତ୍ର ଏହି ବହି ଖଣ୍ଡିକର ଯଥାକ୍ରମେ ପ୍ରୁଫ୍ ଓ ପାଣ୍ଡୁଲିପି ସଂଶୋଧନ କରିଥିବା ଯୋଗୁଁ ଲେଖକ ସେମାନଙ୍କ ନିକଟରେ ଗଭୀର କୃତଜ୍ଞତା ଜ୍ଞାପନ କରୁଅଛନ୍ତି ।

ବିନୀତ

ଲେଖକ

ଶ୍ରୀ ଜୟକୃଷ୍ଣ ସାହିତ୍ୟ ବିନୋଦ ଗ୍ରନ୍ଥମାଳା ୩ୟ ଖଣ୍ଡ—

# Balageetika

(ପ୍ରଥମ ଓ ଦ୍ୱିତୀୟ ଭାଗ)



ଶ୍ରୀ ବଳଭଦ୍ର ପଟ୍ଟନାୟକଙ୍କ ଦ୍ୱାରା

ପ୍ରଣୀତ ଓ ପ୍ରକାଶିତ

ରମ୍ଭା।

[ପ୍ରଥମ ସଂସ୍କରଣ]

Printed by D. Rath

*AT THE STORE PRESS*

BERHAMPUR

1932

ମୂଲ୍ୟ ଠ ° /୨



ଖଲ୍ଲିକୋଟ ଏବଂ ଆଠଗଡ଼ ରାଜ୍ୟ-ଦ୍ୱୟର
ସୁଦକ୍ଷ ଦେୱାନ,
ରାଓ ସାହେବ—
ଶ୍ରୀ ସଦାନନ୍ଦ ମହାନ୍ତି ବି. ଏ., ବି. ଏଲ୍.

# ଉତ୍ସର୍ଗ ପତ୍ର

ମାନ୍ୟବର ଗ୍ରିଣ ସାହେବ ଶ୍ରୀ ସଦାନନ୍ଦ ମହାନ୍ତି ବି. ଏ.,
ବି. ଏଲ୍., ମହୋଦୟ ଉଦାର ଚରିତେଷୁ ।

ଖଲ୍ଲିକୋଟ ।

ଶ୍ରୀମନ୍ମହୋଦୟ !

ତଳଦିନେ ମୋର ଲିଖିତ 'କାଳିଯାତ୍ରୀ' ପୁସ୍ତିକା ଖଣ୍ଡି ପାଠ କରି, ପରିତୃପ୍ତ ମାନସରେ ପବିତ୍ରମତି ବାଳକ ବାଳିକା-ମାନଙ୍କ ପଠନ ନିମନ୍ତେ ସରଳ ବୋଧଗମ୍ୟ ଭାଷାରେ ପଦ୍ୟ ପୁସ୍ତକଟିଏ ଲେଖ ବୋଲି ଆପଣ ମତେ ଉପଦେଶ ଦେଇଥିଲେ । ସେହି ମହତ୍ ବାକ୍ୟରେ ଅନୁପ୍ରାଣିତ ହୋଇ, ଏହି 'ବାଳଗୀତିକା' ବହି ଖଣ୍ଡି ମୁଁ ଲେଖିବାକୁ ଆରମ୍ଭ କଲି ।

ଦେଶର ଚପଳମତି ବାଳକବାଳିକାଙ୍କ ଶିକ୍ଷା ଭାର, ଯାହାଙ୍କ ଆଜ ଆପଣଙ୍କ ଉପବିତ ହସ୍ତରେ ନ୍ୟସ୍ତ, ତାର ସମୁନ୍ନତି ସାଧନ-ଦିଗରେ ଆପଣ କେତେ ଦୂର ତତ୍ପର ତାର ଜ୍ୱଳନ୍ତ ପରିଚୟ ଆପଣଙ୍କ ବହୁବର୍ଷ-ବ୍ୟାପୀ ଛତ୍ରପୁର ତାଲୁକ ବୋର୍ଡ଼ର ସଭାପତିତ୍ୱ କାର୍ଯ୍ୟ ପରିଚାଳନରୁ ସର୍ବଜନସୁବିଦିତ ହୋଇଅଛି ପୁଣି ସେହି ଶିକ୍ଷାର ଉନ୍ନତି-ସମ୍ପାଦନ-ପ୍ରେରିତ-ହୃଦୟରେହିଁ ଆପଣ ମତେ ଏହି ବହି ଖଣ୍ଡି ଲେଖିବାକୁ ଉତ୍ସାହ ଦେଲେ ।

ଆଜି ପ୍ରଗାଢ଼ ଭକ୍ତିର ସହିତ ଏହି **'ବାଳ ଗୀତିକା'** ଆପଣଙ୍କ ପ୍ରଫୁଲ୍ଲ କର-କମଳରେ ଅର୍ପଣ କରୁଅଛି । ଏହା ବାଳ-ଶିକ୍ଷାର ଅମୂଲ୍ୟ ଉପାଦାନ ସ୍ୱରୂପ ଗୃହୀତ ହେଲେ ସମସ୍ତ ଶ୍ରମ ସାର୍ଥକ ମନେ କରିବି । ଇତି ।

| | |
|---|---|
| ରମ୍ଭା, | ବିନୟାବନତ; |
| ୯-୭-୧୯୩୨ | ଶ୍ରୀ ବଳଭଦ୍ର ପଟ୍ଟନାୟକ |

# ବାଲ ଗୀତିକା

## ( ପ୍ରଥମ ଭାଗ )



### ଈଶ୍ୱର

(ରାଗ—ବଙ୍ଗଳାଶ୍ରୀ)

ଦୟାର ଆଧାର ଅଟନ୍ତି ଈଶ୍ୱର
ତିନି ଭୁବନର ପତି,
କେତେ କେତେ ସୁଖ ଦେଇଛନ୍ତି ଭବେ
ଦୟା ବହି ମୋହ ପ୍ରତି ।
ପିଇବାକୁ ଦେଲେ ନଈ, ଝର ପାଣି
ଖାଇବାକୁ ଦେଲେ ଅନ୍ନ,

ଦେଖିବାକୁ ଦେଲେ ଉଚ୍ଚ ପର୍ବତ,
ଗଛ, ବୁଦା, ବାଲି, ବଣ ।
ପୂନିଅଁ ରାତିର ଆକାଶକୁ ଦେଖି
ମନେ ଲାଗେ ବଡ଼ ସୁଖ,
କଅଁଳ ପବନ ନିତ ନିତ ବହି
ଭସାଇ ନିଏ ମୋ ଦୁଃଖ ।
ତାଙ୍କର ଦୟାରୁ ସାଥି, ସାଙ୍ଗ, ବନ୍ଧୁ
ବାନ୍ଧବ, ଭାଇ, ଭଉଣୀ,
ପିତା, ମାତା ଆଦି ଗୁରୁଜନଙ୍କର
ସ୍ନେହେ ହୋଇଛି ମୁଁ ଋଣୀ ।
ବଡ଼ ଉପକାରୀ ଅଟନ୍ତି ସେ ମୋର
ତାଙ୍କର ସୁଅଦ ଗୀତ,
ଗାଉଥିବ ନିତି ସଞ୍ଜ ଓ ସକାଳେ
ହୋଇ ଅତି ଆନନ୍ଦିତ ।



## ପାଠଶାଳା

(ଗୋପୀଭାଷା ବୃତ୍ତ)

ପିଲେ ନିତି ପାଠଶାଳାକୁ ଗଲେ,
ବଡ଼ ଲୋକ ତୁମ୍ଭେ ହୋଇବ ଭଲେ ।
ଖେଳା, ବୁଲା କଥା ମନରୁ ଛାଡ଼,
ପାଠ ନ ପଢ଼ିଲେ ଖାଇବ ମାଡ଼ ।
ହେଲେ ହେଉ ଅବା ଭିକାରି, କୁଜା,
ପାଠୁଆ ଲୋକକୁ ମିଳଇ ପୂଜା ।

ପାଠ ନ ପଢ଼ିଲେ ହୋଇବ ମୂର୍ଖ,
ପାଇବ ଜୀବନେ ବହୁତ ଦୁଃଖ ।
ପାଠ ପଢ଼ି ତୁମ୍ଭେ ହୋଇବ ଜ୍ଞାନୀ,
ଖୁସୀ ହେବେ ସାହୁ, ପଡ଼ସା ନାନୀ ।



## ଗୋପାଳ

(ରାଗ—ବଙ୍ଗଳାଶ୍ରୀ)

ଗୋପାଳ ଅଟଇ କୁନି ପିଲାଟିଏ
ଦେଖି ତାକୁ ମାତେ ହସ,
ଜନମ ଦିନରୁ ହୋଇଅଛି ସେହି
ମୋହର କଥାରେ ବଶ ।
ପାଖରେ ଦେଖିଲେ ଖଜା, ପିଠା, ଅମ୍ବ
ଲଗାଏ ସେ ବଡ଼ ଅଳି,
ସାହୁ ପଡ଼ସାକୁ ଖେଳି ଯାଉଁ ଯାଉଁ
ନିତ ପଡ଼ୁଥାଏ ଢଳି ।
ଧାଇଁ ନାଚ ସେହୁ ଏଣୁ ତେଣୁ କେତେ
ଗାଇ ସୁମଧୁର ଗୀତ,
ଦୋହଲ ଦୋହଲ ଖେଳୁଥାଏ ନିତ
ହୋଇ ଅତ ଆନନ୍ଦିତ ।
ବଡ଼ କଉତୁକୀ ଅଟଇ ଗୋପାଳ
ନାହିଁ ତାର କିଛି ଦୁଃଖ,
'ମାଆ' ବୋଲି ତାର ଦରୋଟି କଥାଟା
ଶୁଣିବାକୁ ଲାଗେ ସୁଖ ।

ବଳେଇ ନାମାର      ପୁଛି ଲୁଅ ଯେତେ
ପଡ଼ିଲେ ତା କୋଳେ ବସି,
ମୁଖେ ଚୁମ୍ବ ଦେଇ      ଆନନ୍ଦେ ଗୋପାଳ
ପିଠିକି ଦଅଇ ଘସି ।
ଦୂରରୁ ସେ ମୋର      କୁନି ଡ଼ାକ ଶୁଣି
ଖଟ ତଳେ ଯାଏ ଲୁଚି,
ଏପରି ସ୍ନେହର      ପିଲାଟିକୁ କେବେ
ପାରିବି କି ମୁଁ ମୁରୁଛି ।



## ବର୍ଷା

(ଭୃଙ୍ଗବନ୍ତ ବୃତ୍ତ)

ବରଷା ହେଲା ପିଲେ ଦେଖ,
କଳା ଦିଶଇ ଧଳା ମେଘ ।
ଶୀତଳ ପବନ ବହଇ,
ପାଣିରେ ଭଉଁରି ଖେଳଇ ।
କଳା ମେଘରେ ରଙ୍ଗ ବର୍ଣ୍ଣ,
ବିଜୁଳି ଖେଳେ କି ଯତନ ?
ବରଷା କାଳ ଅଟେ ଭଲ,
କ୍ଷେତକୁ ଏହା ଦିଏ ଜଳ ।





## ମଧୁସୂଦନ

(ରାଗ—ବଙ୍ଗଳାଶ୍ରୀ)

ମଧୁ ବୋଲି ଜଣେ ଜ୍ଞାନବାନ ଲୋକ
ଜନମି ଥିଲେ ଏ ଦେଶେ,
ମନକୁ ମୋହର ଭରି ଦେଲେ ଅହା
କେତେ ଭଲ ଉପଦେଶେ ?
ପ୍ରତି ଦିନ ତାଙ୍କ ଲେଖା ପାଠ ମୁହିଁ
ପଢ଼ୁଛି ଆନନ୍ଦ ମନେ,

ତାଙ୍କର ପୋଥିଟି ସିନ୍ଦୁକ ଭିତରେ
ରଖିଛୁ ଅତି ଯତନେ ।
ସରଗ ଦେବତା ଠାରୁ ବଡ଼ ଅହା
ଅଛନ୍ତି ସେ କେଡ଼େ ଲୋକ,
ତାଙ୍କର ଗୀତଟି ପଢ଼ୁଥିଲେ ମତେ
ନ ମାଡ଼ଇ କେଭେ ଭୋକ ।
ମଧୁସୂଦନଙ୍କ ପରି ଲୋକଙ୍କୁ ବା
ଦେବ କେଉଁ ଉପହାର,
ଧନ ରତ୍ନ ତାଙ୍କ ପାଦ ତଳେ ମୁହିଁ
କରୁଥିବ ନମସ୍କାର ।



## ପଞ୍ଚମ ଜର୍ଜ

(ଭାରତ ଶ୍ରୁତ)

ଇଂଲଣ୍ଡର ରାଜା ଭାରତର ଚକ୍ରବର୍ତ୍ତୀ,
କୋଟି କୋଟି ଲୋକଙ୍କର ମୁରବୀ ଅଛନ୍ତି ।

ଦ୍ୱୀପ ପରି ଦେଶଟେ ଦେଖି ଦିଶଇ ସୁନ୍ଦର,
ପଞ୍ଚମଜର୍ଜ ତ ନାମ ଅଟଇ ତାଙ୍କର ।
ସତ୍ୟ, ନ୍ୟାୟ, ଧର୍ମରେ ସେ ପାଳନ୍ତି ପରଜା,
ଖଟନ୍ତି ତାହାଙ୍କ ପଦେ ଲକ୍ଷ ଲକ୍ଷ ରଜା ।
ତାଙ୍କର ରାଜ୍ୟରେ ସୂର୍ଯ୍ୟ ନ ହୁଅନ୍ତି ଲୀନ,
ଏକ ଆଡ଼େ ରାତି ହେଲେ ଆର ଆଡ଼େ ଦିନ ।
ରାଣୀଙ୍କର ନାମ ମେରି ଗୁଣେ ଅତି ଭଲ,
କେତେ ଉପକାର ସେହୁ କରନ୍ତି ଅମୂଲ ।
"ଅହେ ମହାପ୍ରଭୁ ! ସଂସାରର ରଖୁଆଳ
ଏ ଦୁହିଁଙ୍କି ରଖ ଚିରେ କରି ଅନୁକୂଳ" ।

---

## ସତ୍ୟ

(ରାଗ—କଳହଂସ କେଦାର)

ବାଳକେ ନିତି ସତ୍ୟ ବଚନ କହ,
ଲଭିବ ପ୍ରାଣେ ବହୁ ସୁଖ ନିଶ୍ଚୟ ।
ମିଥ୍ୟାବାଦୀକୁ କେବେ ନ ଯାଅ ପ୍ରତେ,
ନ ରଖ ବନ୍ଧୁ ଭାବ ତାହା ସଙ୍ଗତେ ।
ସତ୍ୟ ଆଦର ପୁଣି ସତ୍ୟ ଚିନ୍ତନ
ଘେନି ପବିତ୍ର କର ନର ଜୀବନ ।
କହିବ ଯେବେ ସଦା ସତ୍ୟ ବଚନ,
ସୁଖୀ ହୋଇବେ ଭବେ ସମସ୍ତ ଜନ ।
ସତ୍ୟ କଥାରେ ସଦା ବଳାଇ ମତି,
ଲଭ ଜୀବନେ ତୁମ୍ଭେ ଉତ୍ତମ ଗତି ।

କେଡ଼େ ପବିତ୍ର ଆହା ନର ହୃଦୟ,
ମିଥ୍ୟାର ସେ କି ସ୍ଥାନ ଅଟଇ କହ ?
ଯେ ଲୋକ ସତ୍ୟ ପ୍ରତି କରେ ଆଦର,
ତା ହୃଦ ହୁଏ ଅତି ସ୍ୱଚ୍ଛ ସୁନ୍ଦର ।

## ପିତାମାତା

( ରାଗ—ଯାରେ ଯାଃ ଭୃ ବାଟେ ପ୍ରଭ )

ପିତା, ମାତା ବଡ଼ ଧନ ଅଟନ୍ତି ଜଗତେ,
ହେ ବାଳକେ ତାଙ୍କ ପାଦେ ପୂଜିବ ସତତେ !
ବଡ଼ ଉପକାରୀ ସେହୁ ଦେଲେ ତ ଜନମ,
ପାଳିଲେ ତୁମ୍ଭଙ୍କୁ କରି ଅତ୍ୟନ୍ତ ଯତନ ।
ଟଙ୍କା ସୁନା ସାରି ସେହୁ ପାଠ ପଢ଼ାଇବେ,
ଉପଦେଶ ଦେଇ ଭଲ ଗୁଣେ ଗଢ଼ାଇବେ ।
ଜୀବନର ଅଟନ୍ତି ସେ ଅତି ବଡ଼ ଧନ,
ତାଙ୍କ ପାଦ ତଳେ ବାରୁ ରଖି ଥାଅ ମନ ।
ସବୁ ସୁଖ ଶାନ୍ତି ଦାତା ଅଟନ୍ତି ତ ସେହି,
ତାଙ୍କ ସ୍ନେହ ବଦଳରେ କି ପାରିବ ଦେଇ ?
ଏକ ମାତ୍ର ବାଟ ଅଛି ଶୁଝିବାକୁ ଋଣ,
ସଂସାରକୁ ଦେଖାଇବ ଯଦି ଭଲ ଗୁଣ ।

—ସମାପ୍ତ—

# (ଦ୍ୱିତୀୟ ଭାଗ)

## ଉପଦେଶ

(ସ୍ୱର—ଭାଗବତ ବୃତ୍ତ)

୧

ସାଧୁ ସଙ୍ଗମ ଦିଏ ସୁଖ,
ନ ଗ୍ରହ ଅସାଧୁର ମୁଖ ।
ଯେ ଲୋକ କହେ ସତ୍ୟ କଥା,
ତା ସଙ୍ଗେ ମିଶ ହେ ସର୍ବଥା ।
ମିଥ୍ୟା କହିବା ବଡ଼ ଦୋଷ,
ଏ କଥା ସର୍ବେ ମନେ ପୋଷ ।

ଅଧର୍ମେ ଅରଜିଲେ ଧନ,
ନ ରହେ ତାହା ବହୁ ଦିନ ।

ମୃତ୍ୟୁକୁ ନ କର ହେ ଭୀତ,
ଏହା ତ ସଂସାରର ରୀତ ।

୨

ଈଶ୍ୱର ପଦେ ଦେଲେ ଧ୍ୟାନ,
ହୋଇବ ଧନ, ଜ୍ଞାନବାନ ।

ମହତ କଥା, ପୁଣ୍ୟ କର୍ମ,
ଅଟଇ ମନୁଷ୍ୟର ଧର୍ମ ।

ପାଠ ପଢ଼ାରେ ଦେଲେ ମନ,
ଲଭିବ ବହୁ ଧନ, ରତ୍ନ ।

ଶୁଣାଇ ଧୀର, ଶାନ୍ତ ବାଣି,
ତୋଷିବ ଭବେ ସର୍ବ ପ୍ରାଣୀ ।

ଗୁରୁଙ୍କ ପାଦେ ମନ ଦେଲେ,
ଲଭିବ ଭଲ ବୁଦ୍ଧି ଶିଳେ ।

ଚପଳ ଭାବ ହୃଦୁଁ ତେଜ,
ଅଗର କଥା ମନେ ହେଜ ।



## ସକାଳ

(ଭଙ୍ଗା କଲେବର ବଢାଇ ବୃତ୍ତି)

ସକାଳ ହେଲାଣି ବାଳକେ ତେଜ ଅଳସ ଭାବ,
ବାଡ଼ି ଅଗଣାରେ ପକ୍ଷିଏ ଆସି ଦେଲେଣି ରାବ ।

ପୂରୁବ ଦିଗଟି ଆଲୋକେ ଦେଖ ହୋଇଛି ଭରା,
ସଂସାର ଦାଣ୍ଡରେ ବସିଛି କେତେ ଶୋଭା-ପସରା ।

ବନେ ବନେ ଫୁଲ ଫୁଟିଛି ହୋଇ ଅତି ଯତନ,
ଦକ୍ଷିଣ ଦିଗରୁ ବହୁଛି ଧୀର ଧୀର ପବନ ।

ଜାଇ, ଯୂଇ, ମଲ୍ଲି, ଟଗର, ହେନା, ଗଙ୍ଗଶିଉଳି,
ଯେଉଁମାନେ ଝଞ୍ଜା ପବନେ କାଲି ଗଲେ ଝାଉଁଳି ।

ଏବେ ତାଙ୍କ ମୁଖ ଦିଶୁଛି ଦେଖ କେଡ଼େ ସୁନ୍ଦର,
ସକାଳ ବେଳଟି ଅଟଇ ଅହା କି ମନୋହର ।

ଏକାଳେ ବାଳକେ ଶେଯରୁ ଉଠ ଉଠ ବହନ,
ଚକ୍ଷୁରେ କେତେ ଶୋଭା ସମ୍ମୁଖେ ପୂରି ଅଛି ଭୁବନ ।

ନିତ ନିତ ଉଠି ସକାଳୁ ପାଠ-ଶାଳାକୁ ଯାଅ,
ଗୁରୁ ପଦ ତଳେ ପଡ଼ିଣ ତାଙ୍କ ବନ୍ଦନା ଗାଅ ।
ଦେବେ ସେ ବାଳକେ ତୁମ୍ଭଙ୍କୁ ଅତି ଉତ୍ତମ ଜ୍ଞାନ,
ତାଙ୍କ ପାଦ ତଳେ ସନ୍ତତ ରଖି ଥାଅ ହେ ଧ୍ୟାନ ।



## ଭିକାରି

(ଗୋପୀଭାଷା ବୃତ୍ତ)

କନ୍ଦିଅ ବୁଢ଼ାଟି ମାଗଇ ଭିକ,
ମନୁଷ୍ୟ ପଣେ ତା ଜୀବନ ଧିକ ।
ଯୁବା କାଳେ ସେହୁ ବହୁତ ଧନ,
ସଞ୍ଚିଥିଲା କରି ଅତି ଯତନ ।
ଚୋରି ହୋଇ ପୁଣି ବହୁ ଅନ୍ୟାୟ
ଆଚରି ସେ ଧନ ହେଲା ଅଦାୟ ।

ଏଣେ ମହାପ୍ରଭୁ ଭିକାରି ବେଶ,
ଧରି ତାର ଦ୍ୱାରେ କଲେ ପ୍ରବେଶ ।
କହିଲେ "ମଣିମା ଗୁଟିଏ ମୁଠେ,
ଦିଅ ହେଲେ ମୋର କଷ୍ଟ ତୁଟେ,
ବଡ଼ ଗରିବ ମୁଁ ବଞ୍ଚିବି ମାଗି",
ବୋଲନ୍ତେ କନିଆ ଉଠିଲା ରାଗି ।

ତାହା ଶୁଣି ପ୍ରଭୁ କହିଲେ ବାଣି,
"ଆରେ ମୂଢ଼ ତୁହି ନ ପାରୁ ଜାଣି ।
ବହୁତ ପାପ ତୁ କଲୁଣି ଠୁଳ,
ଯାଉ ତୋର ଧନ ବୁଡ଼ୁ ତୋ କୁଳ ।"
ସେହି ଦିନୁ ତାର ସମ୍ପତ୍ତି ଗଲା,
ହାତ ପରି ପୁଅ ରୋଗରେ ମଲା ।
ଭିକାରି ବେଶରେ ବୁଲଇ ସେହି,
ଭିକ ମୁଠେ ତାକୁ ନ ଦିଏ କେହି ।
ଚୋରି କଲା ଧନ ଅଧର୍ମ୍ମ ବିତ୍ତ,
ଶରୀର ଧନ ପାଇଁ ନୁହେଁତି ମିତ ।





# ହାତୀ

(ରାଗ—ବଙ୍ଗଳାଶ୍ରୀ)

ସଂସାର ଭିତରେ ଯେତେ ଜୀବ, ଜନ୍ତୁ
ରଖିଛନ୍ତି ଦୟାମୟ,
ତାଙ୍କର ଭିତରୁ ହାତୀ ଠାରୁ ବଳି
ବଡ଼ ଅଛୁ କିଏ କହ ।
ଦୂରରୁ ତାହାର ଦେହଟା ଦିଶଇ
କଳା ପରବତ ପରି,
ଏକୁଟିଆ ହୋଇ ହାତୀଶାଳକୁ ମୁଁ
ନ ଯାଏଟି କେବେଁ ଡରି ।
ଚାରି ଗୋଡ଼ ତାର ବର ଗଣ୍ଡି ପରି
ଅଟଇ ବହୁତ ମୋଟ,
ମୁହଁକୁ ଦେଖିଲେ ଆଖି ଦୁଇ ଗୋଟି
ଦେଖାଯାଏ ଅତି ଛୋଟ ।
ଦୁଇ ଦାନ୍ତ ତାର କଇଁଫୁଲ ପରି
କେଡ଼େ ଧୋବ ସର ସର,
ଦୁନିଆଁ ଭିତର ସଞ୍ଜ-ବେଳ ଜହ୍ନ
ଠାରୁ ଅଧିକ ସୁନ୍ଦର ।

ଆମ୍ଭ ଦାଣ୍ଡ ବାଟେ ହାତୀ ଗଲ ଗଲେ
ପିଲାଏ ଫିଙ୍ଗନ୍ତି ମାଟି,
କେଡ଼େ ଧୀର ଭାବେ ଗ୍ଲ ଥାଏ ସେହୁ
ନ କର କାହାକୁ ପାଟି ।

ସହିବାର ଗୁଣ ଥିବାରୁ ଟିନା ସେ
ପାଇ ଅଛୁ ଏଡ଼େ ଦେହ,
ମୁହିଁ ସେହିପର ଜୀବ, ଜନ୍ତୁ ସଙ୍ଗେ
କରିବ ବହୁତ ସ୍ନେହ ।

ନଷ୍ଟ ଭାବେ ସାହି, ପଡ଼ିସାଙ୍କ ସଙ୍ଗେ
ନ କରିବ କେବେଁ ଅଳି,
ଭଲ ଗୁଣ ଦେଖି ପ୍ରଭୁ ମତେ ବଡ଼
କରିବେ ହାତିର ଭଳି ।



## ଚନ୍ଦ୍ର

(ଗ୍ଲଗ— ଚକ୍ରକେଳ)

ସଞ୍ଜବେଳେ ନୀଳ ଆକାଶେ ଉଇଁ,
ବନ, ବୁଦା, ବିଲ, ପାହାଡ଼ ଭୁଇଁ ।
ଗୁହ ଆଡ଼େ ବଣ୍ଟୁଥାଏ ଆଲୋକ,
ତାକୁ ଦେଖି ମୋତେ ନ ମାଡ଼େ ଶୋକ ।
ନଈ, ନାଳ, ଝର, ବନ୍ଧର ଜଳ
ଠାରୁ ତା କରଣ ଅତି ଶୀତଳ ।

ସର, ଛେନା ପାଇଁ ବଢ଼ିଲେ ବୋଷ,
ତାକୁ ଦେଖି କାହ୍ନୁ ହୁଅଇ ତୋଷ ।
କି ସୁନ୍ଦର ଅହା ଅଲୁଅ ରାତ,
ତାକୁ ଦେଖି ଘୁଞ୍ଚିଯାଏ ଅନ୍ଧାର ।
ଚଉଦିଗେ ତାର ନକ୍ଷତ୍ର-ମାଳ,
ଯେଣୁ ଶୋଭା ପାଏ ରଜନୀ କାଳ ।
ଚନ୍ଦ୍ର ପକ୍ଷେ ବଢ଼େ ଦିନକୁ ଦିନ,
କୃଷ୍ଣ ପକ୍ଷେ ତନୁ ହୁଅଇ କ୍ଷୀଣ ।
ତାକୁ ଦେଖି କଇଁ ଫୁଟଇ ଜଳେ,
ତା ପରି କେ ଅଛୁ କହନ୍ତି ଭଲେ ।



## ତରୁଲତା

(ରାଗ—ବଙ୍ଗଳାଶ୍ରୀ)

ଆହା କି ସୁନ୍ଦର ତରୁ, ଲତା, ବୃକ୍ଷେ
ପୂରିଅଛି ଏହି ସଂସାର
ଧୀର ଭାବେ ସେହି କେତେ କେତେ
କରୁଛନ୍ତି ଉପକାର ?
ଆମ୍ବ, ଜାମ, କୋଳି ପଣସ, କଦଳୀ
ଖାଇବାକୁ ଲାଗେ ମିଠା,
ନଡ଼ିଆରେ ନିତ ରାଧୀ ନାନୀ ମୋର
କରି ଖାଏ କେତେ ପିଠା ।
ତାଙ୍କର ପ୍ରସାଦୁଁ ଜୀବନଟା ମୋର
ହୋଇଅଛି ସୁଖମୟ,

ଖରା, ବରଷାରେ ଭେଟଭେ ହେଲେ ହେଁକ
ଶୋଷକୁ ନ ଲାଗେ ଭୟ ।
ଡାଳେ ଡାଳେ ଆହା ଦୋଳୁ ଅଛୁ କେତେ
ଫଳ ଅତି ସୁଆଦୟା,
ଖାଇ ତାକୁ କେତେ ସାହୁ, ପଡ଼ସାଙ୍କୁ
କରୁଛୁ ମୁଁ ଦୟା କିଆ ।
ଅପାଙ୍କ ଗାଆଁକୁ ଆମ୍ଭ ଧର ମୁହିଁ
ଗଲାବେଳେ ଖରା କାଳେ
ବାଟ ଚାଲି ଚାଲି ଥକି ଗଲେ ଗଛ
ଛାଇରେ ହାଲିଆ ମାରେ ।
ଛୋଟ ଦଉଡ଼ିରେ ଆମ ବାଳି ଗାଈ
ଗୁହାଳରେ ହୁଏ ବନ୍ଧା,
କାଠ ଲାଗି ସିନା ହାଣ୍ଡି ଶାଳେ କାଳି
ଭାତ ହେଉଥାଏ ରନ୍ଧା ।
ତରୁ, ଲତା, ବୃକ୍ଷ ଲାଗି ସିନା ମୁହିଁ
ଭୋଗୁ ଅଛୁ ଏତେ ସୁଖ,
ତାଙ୍କର ଦୁଃଖରେ କାନ୍ଦବ ମୁଁ କାଳି
ମନେ ବହୁ ବଡ଼ ଦୁଃଖ ।





# ଚଷା

(ରାଗ—ବଙ୍ଗଳାଶ୍ରୀ)

ସଇଜ ଯାକର ବଡ଼ ଉପକାରୀ
ଅଟଇ ତ ଚଷା ଭାଇ,
ଖରା, ଛାଇରେ ସେ କରୁଥାଏ କାମ ।
ଦେହରୁ ଝାଳ ବୁହାଇ ।
କେଡ଼େ ବଳୁଆ ସେ ହାଳିଆ ନ ମାରି
ଚାଲିଯାଏ କୋଶ କୋଶ,

କାମ କରୁଥିଲେ ଦିନଯାକ ତାଙ୍କୁ
ନ ଲାଗଇ ଭୋକ ଶୋଷ ।
ବର୍ଷା ଋତୁରେ ମେଘ ବରଷିଲେ
ଚଷାକୁ ନ ମାଡ଼େ ଡର,
କୋଡ଼ି ଧରି କାମ କରୁଥାଏ ପାଣି
ପଡ଼ୁଥାଏ ଝର ଝର ।
ବରଷଟି ଯାକ ଦୁଃଖେ କାମ କରି
ସୁଖେ ମଳଇ ସେ ଧାନ,
ମୋ ସାନ ଦେହରେ ଚଷା ପରି ବଳ
ଦିଅ ଅହେ ଭଗବାନ !



## ଦିନ ରାତି

( ରାମାୟଣ ବୃତ୍ତ )

ଦିନ ଅଟେ ଭାଇ, ରାତି ଅଟଇ ଭଉଣୀ,
ଏକ ଥର ଦିନ ଭାଇ କହିଲା ତ ପୁଣି ।
"ଭଉଣୀ ରାତି ଲୋ ତୁ ତ ମୋହଠାରୁ ସାନ",
ତାହା ଶୁଣି ରାତି ମନେ କହିଲା ଗୁମାନ ।
ଦିନ କରେ ରାତି ତହୁଁ ଘଣ୍ଟାଟିଏ ଧରି,
ଦିନର ବେଳ ଗଣିଲା ମନ ଅଣ୍ଟ କରି ।
'ଠକ' 'ଠକ' ହୋଇ ଘଣ୍ଟା ଶବଦ କରଇ,
ଷାଠିଏ 'ଠକ'ରେ ଏକ ସେକଣ୍ଡ ହୁଅଇ ।
ଷାଠିଏ ସେକଣ୍ଡେ ହୁଏ ଗୋଟିଏ ମିନଟ,

ଷାଠିଏ ମିନଟେ ପୁଣି ହୁଏ ଏକ ଘଣ୍ଟା ।
ବାର ଘଣ୍ଟା ପରେ ଦିନ ହୋଇ ଗଲା ଶେଷ,
ଏ କଥାକୁ ପିଲେ ଶୁଣ ଦିନ କଲା କସ ।
ରାତିଠାରୁ ଘଣ୍ଟାଟିକୁ ଛଡ଼ାଇଣ ନେଲା,
ରାତିର ବେଳକୁ ସେହୁ ବସିଣ ଗଣିଲା ।
ଦିନ, ରାତି ଦୁହେଁ ଏ ତ ହୋଇଲେ ସମାନ,
ଯେ ଯାହା ଦାଗରେ ଗଲେ ପାଇ ଅପମାନ ।

---

## ସ୍ୱାସ୍ଥ୍ୟ
### (ରାଗ—ବଙ୍ଗଳାଶ୍ରୀ)

ସ୍ୱାସ୍ଥ୍ୟ ଅଟେ ବଡ଼ ଧନ ଏ ଜଗତେ
କରିବା ତାକୁ ସଞ୍ଚୟ,
ସ୍ୱାସ୍ଥ୍ୟ ବଳେ ଏହି ମନୁଷ୍ୟ ଜୀବନ
ହୁଏ ଅତି ସୁଖମୟ ।
ଠିକ୍ଲେ ଖାଇବା ଠିକ୍ଲେ ଶୋଇବା
ଠିକ୍ଲେ ଉଠିବା ନିତି,
ଗୁରୁଜନଙ୍କର ପାଦେ ମନ ଦେଇ
ଗାଇବା ତାଙ୍କର ଗୀତ ।
ନିତି ନିତି ସଞ୍ଜ ସକାଳେ ଦେହକୁ
କରୁଥିଲେ ପରିଷ୍କାର,
ସୁନା ପିଲା ବୋଲି ପିତା, ମାତା କେତେ
ଦେଉଥିବେ ପୁରସ୍କାର ।

ରଚଣା ନାଳୀର ଦରପଣ ପର
ମନକୁ କରିବା ସ୍ୱଚ୍ଛ ,
ଈଶ୍ୱରଙ୍କ ପାଦେ ମନ ଦେଇଥିବା
ନ କହିବା ମିଛ ଖଚ ।
ଲୁଗା, ପୋଥି, ପେଡ଼ି, ଘର, ଦାଣ୍ଡି, ବାଡ଼ି
ରଖୁଥିବା ନିରମଳ,
ସ୍ୱାସ୍ଥ୍ୟ ପାଇଁ ଅମ୍ଭେ ସାବଧାନ ହେଲେ
ଦେହକୁ ଆସିବ ବଳ ।






ଶ୍ରୀ ଦାମୋଦର ରଥଙ୍କ ଦ୍ୱାରା ଷ୍ଟୋର ପ୍ରେସ୍, ବ୍ରହ୍ମପୁରରେ ମୁଦ୍ରିତ ।

ଶ୍ରୀଯୁକ୍ତ ବଳଭଦ୍ର ପଟ୍ଟନାୟକଙ୍କ ପ୍ରଣୀତ ପୁସ୍ତକାବଳୀ:—

କାଳିଯାସ୍ତୀ (ପଦ୍ୟ) ଟ ୦ /୩

ବୀରନାସ୍ଥ (ଗଦ୍ୟ) ଟ ୦ ୯.

ବାଳଗୀତିକା (ପଦ୍ୟ) ପ୍ରଥମ ଓ ଦ୍ୱିତୀୟ ଖଣ୍ଡ ସମନ୍ୱିତ ଟ ୦ ।୬

ଉକ୍ତ ତିନୋଟି ବହି ମାନ୍ଦ୍ରାଜ ଟେକ୍ଷ୍ଟ ବୁକ୍ କମିଟି ଦ୍ୱାରା ମଞ୍ଜୁର ହୋଇ ସାରି ଅଛି ।

ପ୍ରାପ୍ତିସ୍ଥାନ:—

(୧) ଶ୍ରୀ ଜୟକୃଷ୍ଣ ପାଠାଗାର
ପୋ: ରମ୍ଭା
ଜି: ଗଞ୍ଜାମ

(୨) ଷ୍ଟୁଡେଣ୍ଟସ୍ ଷ୍ଟୋର
ପୋ: ବ୍ରହ୍ମପୁର
ଜି: ଗଞ୍ଜାମ

